# କଥାମାଳିକା ।

ବା

## ଛନ୍ଧି ଓଷା ଓ ବୁଧେଇ ଓଷା

ପାଞ୍ଚଂଶ ଟାଉ



ପ୍ରଥମବାର ମୁଦ୍ରିତ ।

BABU KHAN

ଅର୍କୋଦୟ ପୁସ୍ତକାଳୟ

ଚୌଧୁରୀ ବଜାର

କଟକ CUTTACK

ମୂଲ୍ୟ ୫° /୬ ଛଅ ପଇସା ମାତ୍ର ।

# ଜହ୍ନିଓଷା କଥା ।

କହନ୍ତି ମିତଣୀ ଶୁଣ ତୁଳସୀ । ଅଶ୍ୱିନ ମାସରେ ପଡେ ଏ ଓଷା ॥ ତିରିଶି ଦିନ ଯାଏ ମେଳ ହୋଇ । ଲିଅ ଉଖୁଡ଼ା ଯେ ଯାହା ମିଳଇ ଜହ୍ନି ଫୁଲ ଧେନ ଯେ ଯାହା ବାଳୀ । ଓଷା ପୂଜନ୍ତି ଦେଇ ହୁଳହୁଳି ॥ ନସ୍ତ୍ରନ୍ତି ଅପୂର୍ବ ଯତନ କରି । ବାଳୁଙ୍ଗୀମାନେ ହୋଇଣ ମେଳି ॥ ଏ ଓଷା କଲେ କି ଫ ମାନ ହୁଏ । ଯାହା ମନାସିବ ସେ ଫଳପାଏ ଦେହରେ ଯେତେ ବ୍ୟାଧିମାନ ଥିବ । ଜହ୍ନିଓଷା କଲେ ଭଲହୋଇବ ॥ ଯେଉଁ ଲୋକମାନେ ଝାହ୍ନ କରିବେ । ଅପୁତ୍ରିକ ହୋଇ ସେହୁ ମରିବେ ଯେଉଁ ଲୋକମାନେ ଆନନ୍ଦ ହେବେ । ଧନ ଜନ ଗୋପ ଲକ୍ଷ୍ମୀ ପାଇବେ ॥ ଏଥୁ ଅନନ୍ତରେ ଶୁଣ ସୁଜନ । ଆହୁରି କଥାଏ କହିବି ପୁଣ ॥ ମହାରାଷ୍ଟ୍ର ଦେଶ ଅଟଇ ଘର । ନାମ ଯେ ତାହାର ଶ୍ରୀ ମହେ- ଶ୍ୱର ॥ ତାର ଭାରିଯା ନାମ ଜମ୍ବୁବତୀ । ସେହୁ ପିଲାଙ୍କୁ କଲା କଳପଛ ମୁଚୀ ଖାଇବାର ମରଣ ଜାଣ । ଏହା କହିଗଲା ଘରକୁ ପୁଣ ॥ ଏ କଥା ଶୁଣିଣ ସେ ବୃନ୍ଦାବତୀ । ମାୟାରେ ସର୍ପ ପେଷିଲେ ଝଟିତି ॥ ଶେଯାରେ ଶୋଇଛି ତାର ବାଳକ । ଦଂଶିଲା ଯାଇଁ ତାକୁ କାଳସର୍ପ ॥ ମାତା ତାର କ୍ଷୀର ଦେବାକୁ ଗଲା । ଯାଇଣ ପୁଅକୁ କୋଳେ ଧରିଲା ॥ ଦେଖିଲା ତାର ପିଣ୍ଡେ ପ୍ରାଣ ନାହିଁ । ହା ପୁଅ ବୋଲି ରୋଦନ କରଇ ॥ ପୂର୍ବେ ମୁଁ କେଉଁ ପାପ କରିଥିଲି । ଏ ଜନ୍ମ ମୁହିଁ ଅପୁତ୍ରିକ । ହେଲି ॥ ଏହି ସମୟରେ ପିତା ତାହାର । ପରୁଷରେ ମଲା କେମନ୍ତେ କୁମର ॥ ଭାରିଯା ବୋଲେ ବାଳୁଙ୍ଗୀମାନେ । ଓଷା କରୁଥିଲେ ଆନନ୍ଦ ମନେ । ତାହାଙ୍କୁ ଦେଖି ଇଙ୍ଗିତ ମୁଁ କଲି । ଇଙ୍ଗିତ କରି ଏ ଦଶା

ପାଇଲ ॥ ଶୁଦ୍ଧସ୍ନ କଲେ ଗୃହ ଏବେ ଯିବା । ବୃନ୍ଦାବତୀଙ୍କ ଚରଣ ସେବିବା ॥ ଦୁଇ ପ୍ରାଣୀଙ୍କର ଏକତ୍ର ମନ । ବୃନ୍ଦାବତୀଙ୍କି ମନେ କଲେ ଧ୍ୟାନ ॥ ଜୀଅଇ ଦେବ ଯେବେ ମୋ କୁମର । ବାନାବିଖ୍ୟାତହୋଇବ କୁମର ॥ ତାହାଙ୍କ ଭକ୍ତି ଦେଖି ବୃନ୍ଦାବତୀ । ପ୍ରସନ୍ନ ହୋଇଲେ ଅତି ସ୍ନେହେ ॥ କଲେ ଗୃହସ୍ତାଳୁଣୀ ଗରବ କଲୁ । ଓଷାକୁ ମୋରକମ୍ପା ନନ୍ଦା କଲୁ ॥ ମାଏ ଜାଣି ତାର ବିକଳ ମନ । ପୁତ୍ର ପାଶରେ ମିଳିଲେ ଚନ୍ଦନ ॥ ପୁତ୍ରକୁ ଯେ ତାର ଜୀଅଇ ଦେଲେ । ବୃନ୍ଦାବତୀ ଅନ୍ତର୍ଦ୍ଧାନ ହୋଇଲେ ॥ ଶେଯରେ ବସି କାନ୍ଦଇ କୁମର । ଅନନ୍ଦେ ମନେଧଇଲା ହୋତର ॥ ବୃନ୍ଦାବତୀଙ୍କର ଆଜ୍ଞା ଏମନ୍ତ । ଅନନ୍ଦ ମନେ କଲେ ଏ ବ୍ରତ ॥ ସନ୍ଧ୍ୟା ଧ୍ୟାନ ଉପବାସେ ଥିବ । ପିଠାପଣା କରି ପୂଜା କରିବ ଏମନ୍ତେ ଚଳିବ ମୂଳରେ ପୁଣ । ପୂଜାବିଧି ସାରି ଅର୍ଘ୍ୟ ଦେଲଣ ॥ ଅନନ୍ଦମନେ ହୁଳହୁଳି ଦେଲେ ॥ ଯେ ଯାହାଘରକୁ ଚଳିଏ ଗଲେ ॥ ଏଗାର ଅକ୍ଷର ତେତିଶ ପଦ । ସମ୍ପୂର୍ଣ୍ଣ ହୋଇଲା ପ୍ରଥମ ଛାନ୍ଦ ॥

—○✻○—

କହିବା କଥାଏ ଶୁଣ ସୁଜନ । ମନରେ କିଛି ନ ଧରିବ ଆନ ॥ କଥାଏ ମନରେ ପଡ଼ିଲା ମୋର ॥ ତୁଳସୀଦେବୀଙ୍କ ଏ ଓଷା ସାର ॥ ଯେଉଁ ପିଲମାନେ ଓଷା କରନ୍ତି ॥ ଅଭିପ୍ସୁ ବର ତାହାଙ୍କ ପାଅନ୍ତି ଏମନ୍ତେ ଉତ୍ତରଷ୍ଟ୍ର ନାମେ ପୁର । ତହିଁରେ ଅଛି ଏକ ସାହୁଘର ନାମ ତାହାର ଅଟେ ଭଗୀରଥୀ ॥ ତାର ଭରିଯା ନାମ ଯେ ସୁକାନ୍ତି ॥ ତାହାର ଅଛନ୍ତି ପାଞ୍ଚଟି ପୁଅ । ପାଞ୍ଚ ପୁଅରେ ଗୋଟିଏକ ଝିଅ । ତାର ଝିଅ ନାମ ଅଟଇ ଗଧୀ । ତାର ଦେହରେ ହେଲା କୁଷ୍ଠବ୍ୟାଧି ॥ ମାତା ତାହାର ଦେଖିଣ କାନ୍ଦଇ ॥ କେଉଁ ଦେବତା ଥିଲେ ଏହା ଲୋଡ଼ି ॥ ଦେଖିଲା ଚଉରାମୂଳରେ ପୁଣ ॥ ପୂଜା କରନ୍ତି ପିଲା ମେଳେ ହୋଇଣ ॥ ସୁକାନ୍ତି ପଚାରିଲେ ପିଲାଏ ଶୁଣ ॥ ଏ ଓଷା କଲେ ହୁଏ କେଉଁ ଗୁଣ ॥ ଦେହରେ ଯେଉଁ ବ୍ୟାଧି ମାନ ଥିବ । ଏ ଓଷା କଲେ ଭଲ ହୋଇଯିବ ॥ ଯେବେ ମୋ ପିଲାଟି ଭଲ ହୋଇବ । ପାଞ୍ଚ

ବର୍ଷଯାଏ ଓଷା କରିବ ॥ ଏମନ୍ତ କହିଣ ଗଲା ସେ ବାଳୀ । ତାହା ନାମରେ ଦେଲେ ହୁଳହୁଳି ॥ ଏମନ୍ତ କେତେ ଦିନ ତହିଁ ଗଲା । ଅଶ୍ୱିନ ମାସ ପ୍ରବେଶ ହୋଇଲା ॥ ଝିଅମାନେ ସମସ୍ତେ ମେଳ ହୋଇ । ଓଷା ପୂଜନ୍ତି ହୁଳହୁଳି ଦେଇ ॥ ତାର ଦେହରୁ କୁଷ୍ଠ ବ୍ୟାଧି ଗଲା । ଓଷା କରିବ ବୋଲିଣ ବୋଇଲା ॥ କାନ୍ଦିଣ ମାତାକୁ କହଇ ଝିଅ । ଓଷା କରିବ ଭୁଜା ମୋତେ ଦିଅ ॥ ଶୁଣିଣ ମାତା କ୍ରୋଧଭର ହୋଇ । ନ କର ଓଷା ବୋଲିଣ ବୋଲଇ ॥ ଏମନ୍ତ ଶୁଣିଣ, ସେ ବୃନ୍ଦାବତୀ । ମାଇଁପରେ ଜ୍ୱର ଧେଷିଲେ ଝିଅଙ୍କୁ ॥ ତାର ପୁଅଙ୍କୁ ତହିଁ ଘେନି ଗଲେ ॥ କୋରଡ଼ ଭିତରେ ନେଇ ରଖିଲେ ॥ ପୁଅଙ୍କୁ ନ ପାଇଲା ଖୋଜି କରି । ମାତା କାନ୍ଦଇ ତାଙ୍କ ନାମ ଧରି ॥ କେଉଁଣେ ଗଲ ଅରେ ରକ୍ଷଣିଧନ । ନ ଦେଖିଲି ଅଉ ତୁମ୍ଭ ବଦନ ॥ ଏମନ୍ତ ବୋଲିଣ ଆକୁଳ ମନ ॥ ବୃନ୍ଦାବତୀଙ୍କୁ ମନେ କଲା ଧ୍ୟାନ ॥ ପାଞ୍ଚ ପୁଅଙ୍କୁ ମୁଁ ଯେବେ ପାଇବି । ପାଞ୍ଚଟି କାକଣ ପୂଜା କରିବି ॥ ବୋଇଲେ ଗଡ଼େଣି ଗର୍ବ କଲୁ ॥ ଓଷା ନ କର ବୋଲି ତୁ ବୋଇଲୁ ॥ ସ୍ୱପନରେ ତାକୁ କହିଣ ଗଲେ ॥ ଝିଅ ତୋର ଓଷା କରୁ ବୋଇଲେ ॥ ଏମନ୍ତେ ଝିଅ ତାର ଓଷା କଲା । ପାଞ୍ଚଟି କାକଣ ନେଇ ପୂଜିଲା ॥ ଆନନ୍ଦମନେ ପୂଜାବିଧି କଲେ । ହୁଳହୁଳି ଦେଇ ଘରକୁ ଗଲେ ॥ ପାଞ୍ଚ ପୁଏ ପୁଣି ଘରେ ମିଳିଲେ ॥ ଆନନ୍ଦରେ ସୁଖେ କାଳ କାଟିଲେ ॥ ଏଗାର ଅକ୍ଷର ତରଣି ପଦ ॥ ସମ୍ପୂର୍ଣ୍ଣ ହୋଇଲା ଦ୍ୱିତୀୟ ଛାନ୍ଦ ॥

ଏଥୁଅନନ୍ତରେ ଶୁଣଦେବ ଋଷି । ତୁଳସୀଦେବୀ ମହିମା ଅଶେଷ ॥ କର୍ଣ୍ଣାଟ ଦେଶରେ ତାହାର ଘର । ନାମ ତାହାର ଅଟେ ପୀତାମ୍ବର ॥ ଭାରିଯା ନାମ ତାର ପ୍ରିୟବତୀ । ତାହାର ଅଟଇ ବଡ଼ ଭକତି ॥ ସାତ ପୁଅରେ ତା ଗୋଟିଏ ଝିଅ । ଝିଅଠାରେ ତାର ଅତ୍ୟନ୍ତ ସ୍ନେହ । ଝିଅ ବୋଲଇ ମାତା ତୁମ୍ଭେ ଶୁଣ । ଏ ଓଷା କରିବଇଁ ମୁହିଁ ପୁଣ

ଏମନ୍ତ ମାତା ଅଗରେ କହଇ । ଭୂଜା ଉଖୁଡ଼ା ଆଣି ଦିଅ ପୁଣ ॥ ମାତା ତାହା ଶୁଣି ଆନନ୍ଦ ହେଲା । ଭୂଜା ଉଖୁଡ଼ା ତାକୁ ଆଣିଦେଲା ଭୂଜା ଉଖୁଡ଼ା ତହୁଁ ନେଇ ଗଲା । ଚଉରାମୂଳେ ନେଇ ଥୋଇ ଦେଲା ॥ ମନ ଆନନ୍ଦେ ପୂଜାବିଧି କଲେ । ହୁଳହୁଳି ଦେଇ ଅର୍ଘ୍ୟ ତୋଳିଲେ ॥ ଏଗାର ଅକ୍ଷର ଏଗାର ପଦ । ସମ୍ପୂର୍ଣ୍ଣ ହୋଇଲା ତୃତୀୟ ଛନ୍ଦ ॥ ବାତୁଳ କୃଷ୍ଣ ନାହିଁ ତାର ବୁଦ୍ଧି । କ୍ଷମା କର ହେ ପ୍ରଭୁ କୃପାନିଧି ॥

—:୦:—

ଆହୁରି କଥାଏ ସୁଜନେ ଶୁଣ । ବୃନ୍ଦାବତୀଙ୍କ ମହିମା ଏସନ ॥ ଯେଉଁ ପିଲାମାନେ ଓଷା କରନ୍ତି । ବୃନ୍ଦାବତୀ ସନ୍ତୋଷ ହୋଇଥାନ୍ତି ॥ ବିରାଟ ଦେଶରେ ତାହାର ଘର । ନାମ ତାହାର ଅଟେ ଧନେଶ୍ୱର ॥ ଭାରିଯା ନାମ ଅଟେ ରମ୍ଭାବତୀ । କରିଅଛି ସେହି ବହୁତ କୀର୍ତ୍ତି ॥ ତାହାର ଅଛଇ ଗୋଟିଏ ପୁଅ । ଗୋଟିଏ ପୁଅରେ ଛଅୋଟି ଝିଅ ॥ ଝିଅ ବୋଲନ୍ତି ମାତା ତୁମ୍ଭେ ଶୁଣ । କରିବି ଓଷା କରିବୁ ଆମ୍ଭେ ପୁଣ ॥ ଏମନ୍ତ ବୋଲି ଝିଅ ଗୋଳ କଲେ । ଭୂଜା ଆମ୍ଭଙ୍କୁ ଦିଅ ସେ ବୋଇଲେ ॥ ମାତା ତାଙ୍କର ବୋଲଇ ଯେ ପୁଣ । ମୁଠା ପୁଜିବାର ନୋହେ ବିଧାନ ॥ ଏମନ୍ତ ବୋଲି ତାଙ୍କୁ ନାହିଁ କଲା । ଯାଇଣ ଗମ୍ଭୀରିଘରେ ଶୋଇଲା ॥ ଏମନ୍ତ ଜାଣିଣ ସେ ବୃନ୍ଦାବତୀ । ସ୍ୱପନରେ ତାକୁ କହିଲେ ସତି ॥ କେତେ ପାମର ମୂଢ଼ପଣ କଲୁ । ଓଷା ନ କର ବୋଲି ତୁ ବୋଇଲୁ ॥ ଯେବେ ତୋ ଝିଅ ଓଷା ନ କରିବ । ସାତ ଦିନେ ତୋ ପୁଅ ନାଶ ଯିବ ॥ ଏମନ୍ତ ସେ ବୃନ୍ଦାବତୀ କହିଣ । ଅନ୍ତର୍ଦ୍ଧାନ ହୋଇ ଗଲେକ ପୁଣ ॥ ନିଦ୍ରାରୁ ଉଠିଣ ସେହି କାମିନୀ । ଗୃହ ଧରିକୁ ଗମନ ଦେଲି ପୁଣି ॥ ଦେଖିଲା କେହି ନାହାନ୍ତି ପାଖରେ ॥ ମନରେ ତାହାର ଭାବନା କରେ ॥ ଓଷା କରିବାକୁ ମୁଁ ନାହିଁକଲି । ନାହିଁ କଲିରୁ ସ୍ୱପନ ଦେଖିଲି ॥ ଏମନ୍ତେ ବିଚାରି ମନରେ ତାର । ଝିଅଙ୍କୁ ବୋଲେ ଓଷା ତୁମ୍ଭେ କର ॥ ଏମନ୍ତେ ଝିଅ ତାର ଓଷାକଲେ ବୃନ୍ଦାବତୀ ଯେ ସନ୍ତୋଷ ହୋଇଲେ ॥ ପିଲାମାନେ ହୁଳହୁଳି ଦେଇଣ

ଜଣ୍ଡି ଫଳଟେର ବନ୍ଧାଇଲେ ପୁଣ ॥ ବନ୍ଦାପନା ସାର ଅର୍ଦ୍ଧ୍ୟ ଦେଇଣ ।
ଘରକୁ ଫିଲ୍ଲାଏ ଗଲେକ ପୁଣ । ଏଗାର ଅକ୍ଷରେ ବାଇଶ ପଦ ।
ଭଣନ୍ତି ହେଲାକ ଚତୁର୍ଥ ଛନ୍ଦ ॥ ବାତୁଳ କୃଷ୍ଣ ନ ଧରବ ଦୋଷ ।
କ୍ଷମାକର ହେ କମଳାବିଳାସ ॥

---

ଶୁଣ ଫିଲ୍ଲାଏ ହୋଇ ଶୁଦ୍ଧମନ । କହୁଚା ତୁମ୍ଭଙ୍କୁ ଓଷା ବିଧାନ ॥ ସକାଳରୁ ସ୍ନାନ କରି ଆସିବ । ଅଗଣାଟେର ଚଉରାଏ ସ୍ଥାପିବ ॥ ଏକ ବର୍ଣ୍ଣୀ ଗାଈ ଗୋବର ନେଇ ॥ ସୁସଜ୍ଜ କରି ଲିପିଥିବ ତହିଁ ॥ ପାଞ୍ଚ ବର୍ଣ୍ଣରେ ମୁରୁଜ ସ୍ଥାପିବ । ଚନ୍ଦରାର ଗୁର ପାଖଟେର ଦେବ ॥ ଓଷା ବିଧି ସମସ୍ତ ସଜାଡ଼ିବ । ଚଉରା ମୂଳରେ ନେଇ ରଖିବ ॥ ଓଷାବିଧି ସାରି ସାୟଂ କାଳରେ । ପ୍ରବେଶ ହୋଇବ ଚଉରାମୂଳେ ॥ କଉଡ଼ି ଗୁଆ ନଡ଼ିଆ ନେଇଣ । ଚଉରାମୂଳେ ସ୍ଥାପନା କରିଣ ॥ ଜଣ୍ଡିଫୁଲ ଗୁଡ଼ିଏକ ଅଣିବ । ବୃନ୍ଦାବତୀଙ୍କି ମଣ୍ଡଣି କରିବ ॥ ପୂର୍ଣ୍ଣକୁମ୍ଭ ନେଇଣ ବସାଇବ । ମୁଣ୍ଡିଆ ମାରି ହୁଳହୁଳି ଦେବ । ଅନ୍ତର କଥାଏ କହିବା ଶୁଣ । ଅଇଁଷ ଜଣ୍ଡି ନ ଖାଇବ ପୁଣ ॥ ସଉରାଷ୍ଟ୍ର ଦେଶେ ରାଜାଏ ଥିଲା । ଜଣ୍ଡିଫଳ ତାହିଁଅ ଛିଣ୍ଡାଇଲା । ଛିଣ୍ଡାଇବାରୁ ହାତ ତାର ପୁଣ । ଖଣ୍ଡଖଣ୍ଡ ହୋଇଗଲା ନିକଣ । କାନ୍ଦଣ ମାତା ଅଗରେ କହିଲା କମ୍ପା ହାତ ମୋ ଏମନ୍ତ ହୋଇଲା ॥ ହାତ ଦେଖି ଜାରମାତାକହଇ । କପାଁ ହାତ ତୋ ଏମନ୍ତ ହୁଅଇ ॥ ଝିଅ ବୋଲେ ମୁଁ ତ କିଛି କରି ନାହିଁ ଏକା ମାତ୍ର ଅଛ ଜଣ୍ଡି ଛିଣ୍ଡାଇ ॥ ଶୁଣିଣ ମାତା ତାହାର କାନ୍ଦିଲା । କେଉଁ ବିଧାତା ମୋତେଟ ଏହା କଲା ॥ ବୃନ୍ଦାବତୀ ତାର ଜାଣିଣ ମନ । ବାଣ୍ଡୀ ବ୍ରାହ୍ମଣୀ ରୂପ ହେଲେ ପୁଣ ॥ ତାହାର ଘର ଭିତରକୁ ଗଲେ । କପାଁ କାନ୍ଦୁଛ ବୋଲିଣ ବୋଇଲେ ॥ କାନ୍ଦଣ ଯେଉଁ କାମିନୀ ବୋଲଇ । ଝିଅ ହାତ ମୋ କମ୍ପା ମିଳି ଯାଇ । ଶୁଣି ବାଣ୍ଡୀ ବ୍ରାହ୍ମଣୀ ପଚାରିଲା । କେଉ ପଦାର୍ଥ ଏହୁ ଛିଣ୍ଡାଇଲା ॥ ଶୁଣିଣ ମାତା ତାର ସେ କହଇ । ଜଣ୍ଡିଗୋଟିଏ ଛିଣ୍ଡାଇଲା ତହିଁ ॥ ଜାଣିଣ

ବର୍ଣ୍ଣୀ ବ୍ରାହ୍ମଣୀ କହିଲା । ଜହ୍ନି ଛଣ୍ଡାଇବାରୁ ଏ ହୋଇଲା ॥ ଏବେ
କହିବା କଥାଏକ ଶୁଣ । ଜହ୍ନିଓଷା କରିବ ଏହୁ ପୁଣ ॥ ଏମନ୍ତ
ବୋଲିଣ ଔଷଧ ଦେଲେ । ସେହିଠାରୁ ଅନ୍ତର୍ଦ୍ଧାନ ହୋଇଲେ ॥ ସେହି
ଔଷଧ ବାଟି ବୋଳି ଦେଲା । ବୋଳିବାରୁ ତା ହାତ କଅଁଳିଲା ॥
ଜାଣିଣ ସେହୁ ଦେଖି ବୃନ୍ଦାବତୀ । ଫେଡ଼ିଲେ ଦେଖି ମୋହର ଦୁର୍ଗତି ॥
ଏମନ୍ତେ ତହୁଁ କେତେଦିନ ଗଲା । ଭାଦ୍ରମାସ ଯାଇଁ ଆଶ୍ୱିନ ହେଲା ॥
ପିଲାଏ ଓଷା କରନ୍ତି ଦେଖିଲା । ମାତାଙ୍କ ଆଗରେ ଯାଇଁ କହିଲା ॥
ମାତା ବୋଇଲେ ଓଷା କର ଯାଇଁ । ନଡ଼ିଆ ପାଚିଲା କଦଳୀ ନେଇ ॥
ହୁଅନ୍ତେ କୁମାର ପୂର୍ଣ୍ଣିମା ଦିନ ॥ ବାଳିଝିଅମାନେ ମିଳିଲେ ପୁଣ ॥
ଭୂଜାଭିଜା ଖୁଡ଼ା କାକୁଡ଼ି ନେଇଣ । ସାନବର୍ଣ୍ଣି ପିଠା କଲେକ ପୁଣ ॥
ସୁବର୍ଣ୍ଣ ଭୃଙ୍ଗାରେ ନେଇ ଥୋଇ । ଚଉରମୂଳରେ ନେଇଣ ଦେଇ ॥
ପୂଜା ସାରିଣ ବନ୍ଦାପନା କଲେ । ଆନନ୍ଦ ମନେ ହୁଳହୁଳି ଦେଲେ ॥
ଚଉରମୂଳରେ ଅର୍ଘ୍ୟ ଦେଇଣ । ପିଲାଏ ଘରକୁ ଗଲେକ ପୁଣ ॥
ଏଗାର ଅକ୍ଷର ଗୁଳିଣ ପଦ । ସମ୍ପୂର୍ଣ୍ଣ ହୋଇଲା ପଞ୍ଚମ ଛାନ୍ଦ ॥
ଜହ୍ନିଓଷା ଗୀତ ଶେଷ ହୋଇଲା । ଧନକୃଷ୍ଣ ଦାସ ଗୀତେ ରଚିଲା ॥

---

ସମାପ୍ତ ।

Printed by A. H. Seth--U. P. Works, Cuttack.

# ବୁଧେଇ ଓଷା ।

ଜୟ ତୁ ବିମଳା ମାଗୋ ଜୟ ତୁ ତାରିଣୀ । ମହିଷାସୁର ମର୍ଦ୍ଦିନୀ ମାଗୋ ଠାକୁରାଣୀ ॥ ଜୟ ତୁ ବିମଳା ମାଗୋ ଦୟାକର ମୋତେ । ମୁହିଁ ଯେ ଆଶ୍ରୟ ମାଗୋ କରିଅଛି ତୋତେ । ମୋର ମନ ବାଞ୍ଛା ମା ଗୋ ତୁ ମୋ ସିଦ୍ଧକର । ଏ ଘୋର ସଂସାରୁ ମା ଗୋ ବାରେକ ଉଦ୍ଧର । ମୁହିଁ ପଚାରୁଛି ମା ଗୋ କହି ଦେବୁ ମୋତେ । ତୋହର ଆଜ୍ଞାରେ ମୁଁ ଯେ କରିବି ବ୍ରତ୍ୟାତେ ॥ ବୁଧାଇ କହନ୍ତି ଯେ ବିମଳାଈଙ୍କି ଚାହିଁ । ଓଷାର ଯେତେକ ବିଧି କହ ମହାମାଈ ॥ ବିମଳା କହନ୍ତି ଏବେ ଶୁଣ ଗୋ ବୁଧେଇ । ଯେ ଯାହା ମନାସେ ତାହା ଅବଶ୍ୟ ସେ ପାଇ ॥ ବିମଳାଈ କହନ୍ତି ଯେ ବୁଧେଇଙ୍କି ଚାହିଁ । ଏହି ଓଷା କଲେ ଯେ ବହୁତ ଫଳ ପାଇ ॥ ଏ ଓଷାର ଉପବାସ ଯେଉଁ ସେ କରିବ । ଅପୁତ୍ରିକ ହୋଇଥିଲେ ପୁତ୍ର ଯେ ପାଇବ ॥ ଯେବେ କୁଷ୍ଠବ୍ୟାଧି ବାଞ୍ଝୀ ମଜ୍ଜନ୍ତି ହୋଇବ । ଏ ଓଷା ଗୋଟିକୁ କଲେ ଭଲ ସେ ହୋଇବ ॥ ଏ ଓଷାର କଥା ଯେବେ ଶୁଣିବ ଶ୍ରବଣେ । ବିମଳାଙ୍କୁ ସ୍ତୁତି ଯେ ବୁଧେଈ କଲା ମନେ ॥ ବୁଧେଈ ଯେ ଏତେକ କହିଣ ତୁନି ହେଲେ । ବିମଳାଈ କହୁ-ଛନ୍ତି ଶୁଣ ଗୋ ବୋଇଲେ ॥ ସୁଜନ ଜନେ ମୋହର ନ ଧରିବ ଦୋଷ । ତୁମ୍ଭେମାନେ ମୋହର ଯେ କରିବ ଉପାସ ॥ ଏ କଥା ଶୁଣିଣ ଯେଉଁ କରିବଟି ଠାଇ । ବୁଦ୍ଧିବାମନ ତାହାଙ୍କ ପାଶକୁ ନ ଯାଇ ॥ କହନ୍ତି କାମିନୀମାନେ ବିମଳାକୁ ଚାହିଁ । ଏ ଘୋର ସଙ୍କଟୁ ମୋତେ ରଖ ମହାମାଈ ॥ ତୋହର ଉପାସ ବିଧି ଆମ୍ଭେମାନେ କରି । ମନୋବାଞ୍ଛା ସମ୍ପୂର୍ଣ୍ଣ ଯେ କରିବୁ ଆମ୍ଭରି ॥ ଏମନ୍ତ ବୋଲିଣ ଯେ କଳନା ମନେ କଲେ । ବିମଳାଈଙ୍କି ମନରେ ସ୍ମରି ବସିଲେ ॥

ବୁଧେଇଓଷା ।

ନିଳାନ୍ଧ୍ରିଳା ଦେଇଣ ଯେ ସକଳ ତରୁଣୀ । ଯାହାର ଯେତେକ କଷ୍ଟ ଜଣାଇଲେ ପୁଣି ॥ ଶୁଣ ସୁଜ୍ଞଜନମାନେ ଏଥିର ଚରିତ । ବ୍ରଧନାମ ମହିମା ଅଟଇ ଏମନ୍ତ । ମଗଧଦେଶ ବୋଲିଯେ ଏକଇ ନଗର । ତହିଁରେ ଅଛଇ ସେ ଯେ ଏକ ସାଧୁବର ॥ ପୁତ୍ର ଦୁହିତା ତାହାର ଆଉ କେହି ନାହିଁ । ଧନ ସମ୍ପତ୍ତି ଯେ ତାର ମାଡ଼ି ଯାଉ ଥାଇ ॥ ଏମନ୍ତ ମନରେ ସେହୁ ଦୁଃଖିତ ହୋଇଣ । କାହାର ପାଶରେ ସେହୁ ନ ବସଇ ପୁଣ ॥ ସେହୁ ରାଜ୍ୟର ସମସ୍ତ ନର ନାରୀମାନେ । ବିଚାରିତ କରଥାନ୍ତି ତାହାଙ୍କର ମନେ ॥ ଏକଦିନରେ ସେହି ଏକଇ ଯେ ଜନ । ସକାଳୁ ଉଠି ସାଧୁର ଗୃହିଁଲା ବଦନ ॥ ବୋଇଲା ଆଜି ମୋହର ଦୁଷ୍ଟିତ ହୋଇଲା । କେଉଁ ଯୋଗେ ଆଜ ମୋର ରାତ୍ରି ପାହିଅଲା ॥ ଅଣ୍ଡକୁଡ଼ା ମୁଖ ଯେହୁ ଗୃହିଁବ । ଦୁଇଥର ସେହୁ ସ୍ନାନ କରିବ ॥ ନୋହିଲେ ଯେବେ ଏହା ନ କରିବ । ରବି ଅସ୍ତଯାଏ ଉପାସେ ଥିବ ॥ ଏମନ୍ତ କହିଣ ଗଲା କାମିନୀ । ସାଧୁତ ବୁଡ଼ା ପଡ଼ିଲା ପୁଣି ॥ ଅହା ବିଧାତା ମୋତେ ଏହା କଲୁ । ଏକାଳେ ମୋତେ ଏହା ଶୁଣାଇଲୁ ॥ ପୂର୍ବରେ କେତେ ପାପ କରିଥିଲି । ଏ ଜନ୍ମେ ମୁହିଁ ଅପୁତ୍ରୀକ ହେଲି ॥ ଏମନ୍ତେ ମନରେ ଦୁଃଖୀ ହୋଇଣ । କାହାର ପାଶେ ନ ବସଇ ପୁଣ ॥ ଏହା ବିଚାରି ଘରକୁ ଯେ ଗଲା । ପତ୍ନୀର ଆଗେ ଏମନ୍ତ କହିଲା ॥ ପତ୍ନୀ ବୋଇଲା ଶୁଣ ଅହେ ନାଥ । କର୍ମରେ ବିହି ଲେଖିଛି ଯେମନ୍ତ ॥ ସମସ୍ତେ କହିଲେ ଏହି ବଚନ । କାହା ଅଟେରେ କହିବା ହେ ପୁଣ ॥ ଏମନ୍ତ ଦୁଃଖରେ ବଞ୍ଚଇ ଦିନ । ଏଥୁଅନନ୍ତରେ ସୁଜନେ ଶୁଣ ॥ ଏମନ୍ତେ ତହିଁ କେତେ ଦିନ ଗଲା । ଭାଦ୍ରବ ମାସ ପ୍ରବେଶ ହୋଇଲା ॥ ଯୋଗେ ସେ ଦିନ ଅଦ୍ୟବୁଧବାର । ବୁଧେଇ ଓଷା ନାମ ଯେ ତାହାର ॥ ସେ ମାସେ ପଡଇ ଯେ ପାଞ୍ଚପାଳି । ପାଞ୍ଚ ପାଳି ଯାକ କାମିନୀ ମିଳି ॥ ସମସ୍ତେ ଓଷାକୋଠିରେ ମିଳନ୍ତି ।

ଆନନ୍ଦ ମନେ ହୁଳହୁଳି ଦ୍ୟନ୍ତି । ସୁନା ଗୃହଁ ଉଡ଼ରେ ଦରବ ଭର ।
ଆଣି ଥୋଇଲେ ସମସ୍ତ କୁମାରୀ । ଏଥୁଅନ୍ତେ ଶୁଣ ସୁଜନ ଜନ ।
ବୁଢେଇ ଓଷାର ବିଧି ବିଧାନ । ଯାପାବଳୀ ଯାକ ଆଗେ ଥୋଇବ ।
ଜାଣିବା ଲୋକ ଯେ ଗୀତ ଗାଇବ । ଯେଉଁ କାମିନୀ ଉପବାସେ
ଥିବ । ବୁଧିବାମନ ଥାପନ କରିବ । ତାହାକୁ ସୁବେଶ କରିବ
ସେହି । ସିନ୍ଦୁର କଜ୍ଜ୍ୱଳ ଶିଳରେ ଦେଇ । ଗନ୍ଧ ଚନ୍ଦନ ତାଙ୍କୁ
ନେଇ ଦେବ । ଶିଳରେ ନେଇ ମଣ୍ଡନ କରିବ । ଗୁଆ ଗୋଟିଏ
ରଖିବ ଯେ ତହିଁ । ବୁଧିବାମନଙ୍କୁ ସ୍ଥାପିବ ସେହି । ଆନନ୍ଦମନରେ
କଥା ଶୁଣିବ । ଆନନ୍ଦମନେ ହୁଳହୁଳି ଦେବ । ବୁଧିବାମାନଙ୍କୁ
ଲାଗି କରିବ । କାମିନୀ ମାନେ ବନ୍ଦାଇଣ ଦେବ । ଅର୍ଘ୍ୟ ନଇବେଦ
ସକଳ ବାଲୀ । କଲ୍ୟାଣ କରିବ ମନରେ ଭାଳି । ଯେଉଁ କାମିନୀ
ଯାହା ମନାସିବେ । ବୁଧିବାମନ ଯେ ତାହାଙ୍କୁ ଦେବେ । ଏମନ୍ତ
କରିଯେ ଓଷା କରିବ । ଅପୁତ୍ରୀକ ଜନ ପୁତ୍ର ପାଇବ । ଅନ୍ଧ ହୋଇ
ଥିଲେ ଚକ୍ଷୁ ପାଇବ । କୁଷ୍ଠ ହୋଇଥିଲେ ନକ ହୋଇବ ।
ଏମନ୍ତେ ଓଷାର ବିଧି ସାରିଲେ । କାମିନୀମାନେ ବାହାର ହୋ-
ଇଲେ । ହୁଳହୁଳି ଶୁଣି ସାଧବ ନାରୀ । ଅଣ୍ଟକୁଡ଼ା କଥା ମନରେ
ଧରି । ସଖିଙ୍କ ଗୃହଁ ବୋଇଲା ବଚନ । ଏ ଓଷାକୁ କଲେ
କେବଣ ଗୁଣ । ବୁଧିବାମନଙ୍କ ଓଷା କରିବ । ଯାହା ମନା-
ସିବ ତାହା ପାଇବ । ବୋଲଇ ମୁହିଁ ଏ ଓଷା କରିବି । ଅପୁତ୍ରିକା
ଦୋଷୁ ପାର ହୋଇବି । ଏମନ୍ତ କହି ବେଗେ ଚଳିଗଲା ।
ସ୍ୱାମୀଙ୍କ ଆଗରେ ଯାଇ କହିଲା । ଶାଶୁ ବୋଇଲା ଆଲୋ
ସାଧବାଣି । ଯେମନ୍ତେ ଏ ଓଷା କରିବ ପୁଣି । ଅପୁତ୍ରୀକ ଦୋଷ
ପାରି ହୋଇବୁ । ବୁଢେଇ ଚରଣେ ସେବା କରିବୁ । ସେହିଠାରୁ
ଓଷା କଲେକ ପୁଣ । ବୁଧିବାମନର ମହିମା ଶୁଣ । ବୁଧିବାମନଙ୍କୁ
ମନରେ ଧରି । ସେହି ଦିନୁ ଗର୍ଭ ହୋଇଲା ନାରୀ । ଦଶମାସ

ଯତ୍ନେ ହୋଇଲା ପୂର୍ଣ୍ଣ । ଜାତ ହୋଇଲା ଏକଇ ନନ୍ଦନ ॥ ଅପୁତ୍ରୀକ ଦୋଷ ତାହାର ଗଲା । ଓଷା କରଣେ ସେ ପୁତ୍ର ପାଇଲା ॥ ଏ ଓଷାକୁ ଯେହୁ ନାରୀ କରିବେ । ଏରୂପେ ସେମାନେ ପୁତ୍ରପାଇବେ ଯେଉଁ ନାରୀମାନେ ଗର୍ବ କରିବ । ସେହୁ ଅପୁତ୍ରିକ ହୋଇ ମରିବ ॥ ଇହଲୋକରେ ତାକୁ ପାର ନାହିଁ । ନରକରେ ସେହି ପଡ଼ିବ ଯାଇ ॥ ଏହି କଥାମାନ ଯେହୁ ଶୁଣିବ । ଆନନ୍ଦ ମନେ ହୁଳହୁଳି ଦେବ ॥ ଏ ଓଷା ଗୋଟିକ ଯେହୁ କରିବ । ଯାହା ମନାସିବ ତାହା ପାଇବ ॥ ପ୍ରଥମଗ୍ରନ୍ଥଯେ ହୋଇଲା ଶେଷ । ଭବେ ଭଣିଲେ ଗୋପୀନାଥ ଦାସ

---

କହିବା କଥାଏ ଶୁଣ ସୁଜନ । ମନରେ କିଛି ନ ଧରିବ ଆନ ॥ କଥାଏ ମନରେ ପଡ଼ିଲା ମୋର । ବିମଳାଇଙ୍କ ଆଜ୍ଞା ଗୋଟିସାର ॥ ଯେଉଁ ଜନ ଶୁଣେ ପୂଜଇ ତାଙ୍କୁ । ଅଭୟ ବର ଦଅଇ ତାହାକୁ ॥ ଚମ୍ପାବତୀ ନାମେ ଏକଇ ପୁର । ତହିରେ ଅଛି ଏକ ଶ୍ରେଷ୍ଠି ଘର ॥ ସେ ନଗ୍ରରେ ଅଷ୍ଟଐଶ୍ୱର୍ଯ୍ୟ ଜାଣ । ବହୁତ ଆୟ ହୋଇ ତହିଁ ଧନ ॥ ସେ ରାଜ୍ୟେ ନାରୀଏ ଓଷା କରନ୍ତି । ବୁଧିବାମାନଙ୍କୁ ମନେ ସ୍ମରନ୍ତି । ସେ ଶ୍ରେଷ୍ଠି ଘରର ମହିମା ଶୁଣ । ଯାହା କହିଲେ ନ ସରଇ ପୁଣ ॥ ଶ୍ରେଷ୍ଠିର ନାମ ଅଟେ ରଘୁସାହୁ । ଭାରିଯା ନାମ ସୁକୁମାରୀ ସେହୁ ॥ ଏକଇ ବ୍ରାହ୍ମଣ ସେ ରାଜ୍ୟେ ଥିଲା । ଶ୍ରେଷ୍ଠି ସଙ୍ଗେ ସେହୁ ବିବାଦ କଲା ॥ ଶ୍ରେଷ୍ଠି ଜିଣିଲା ହାରିଲା ବ୍ରାହ୍ମଣ । ଝିଅ ଗୋଟି ତାକୁ ଦେଲାକ ପୁଣ ॥ ଶ୍ରେଷ୍ଠି ଦେହରେ କୋଷ୍ଠବ୍ୟାଧି ହୋଇ । ବସିଲା ଠାରୁ ଉଠି ନ ପାରଇ ॥ ଦୁଇପ୍ରାଣି ଥାଇ ବିଷ୍ଣୁର ଛଳେ । ଶିବଙ୍କୁ ସେବତା ଗ୍ରଲ ବୋଇଲେ ॥ ଗ୍ରହ ହୋଇଅଛି ବୈନ ସଂଯୋଗ । ଦୁଇ ପ୍ରାଣୀ ଚଳି ଗଲେକ ବେଗ ॥ ଏମନ୍ତ ସମୟେ ବୁଧେଇ ପୁଣ । ବାଟେ ବସିଛନ୍ତି ହୋଇ ମଉନ ॥ ବୃହସ୍ପ ଭରିଜା ଦୁହେଁ ଦେଖିଲେ । ବାଟ ଛାଡ଼ିଦିଅ ବୋଲି ବୋଇଲେ ॥

ବୁଧେଇ ବୋଇଲେ ଛଡ଼ିବନାହି । କ ବର ମାଗୁଛ ମାଗ ହୋ ନୁହି ॥ ଶୁଣି ଆଣୀ ଥାଇ କହେ ବଚନ । କେଉ ଦେବତା ତୁମ୍ଭେ ଅଟେ ପୁଣ ॥ ବୁଧେଇ ବୋଲନ୍ତି ଶୁଣ ଲୋ ନାଗ । ବୁଧେଇ ନାମ ଅଟଇ ମୋହର ॥ ଭାଦ୍ରବ ମାସ ଆଦ୍ୟ ବୁଧବାର । ସେ ମାସେ ଓଷା ପାଞ୍ଚ ପାଳ ମୋର ॥ ଏ ଓଷା ଗୋଟିକ ଯେହୁ କରବ । ଯାହା ମନାସିବ ତାହା ପାଇବ ॥ ଅପୁତ୍ରିକର ଯେ ପୁତ୍ର ହୋଇବ । ଅନ୍ଧ ହୋଇଥିଲେ ଚକ୍ଷୁ ପାଇବ ॥ ଦେହରେ କୁଷ୍ଟ ବ୍ୟାଧିଯେବେ ହେବ । ଏ ଓଷା କଲେ ସେ ଭଲ ହୋଇବ ॥ ବାଞ୍ଛି ମନଛି ଯେ ଓଷା କଲେ । ଅବଶ୍ୟ ଗଛ ଫଳବନ୍ତି ଭଲେ ॥ ଏ କଥା ଶୁଣିଲାକ ଶୁଣି ଆଣୀ । ବୋଇଲା ଏ ଓଷା କରବ ପୁଣି ॥ ଜୀବନ ଥିବାଯାଏ ଯେ ମୋହର । ସେବ ଯେ ଥିବ ଚରଣେ ତୁମ୍ଭର । ଏମନ୍ତ କହି ଦୁହେଁ ଚଳିଗଲେ । ଆପଣା ଆଶ୍ରମେ ଯାଇ ହୋଇଲେ ॥ ବୁଧିବାମନ ଅନ୍ତର୍ଦ୍ଧାନ ହେଲେ । ଶୁଣି ଆଣୀକ ବର ଦେଇଗଲେ ॥ ଏଥି ଉତ୍ତାରୁ ସେ ଉପାସ କଲା । ଗୃହସ୍ଥ ଦେହୁଁ କୁଷ୍ଟବ୍ୟାଧି ଗଲା ॥ ପାଞ୍ଚପୁତ୍ର ତାର ହେଲେ ଜନମ । ସଂସାରେ ବଖ୍ୟାତ ହୋଇଲେ ପୁଣ ॥ ଏଥି ଉତ୍ତାରୁ ଶୁଣ ଆହେ ଆନ । ସେହି ନଗ୍ରରେ ଏକଇ ରାଜନ ॥ ରାଜ୍ୟକୁ ତାର ଶତ୍ରୁ ନ ଆସଇ । ପରଜା ସେହୁ ସୁଖେ ପାଳୁଥାଇ ॥ ଏକ ଦନକର ସେହୁ ରାଜନ । ଶିକାରକୁ ବଜେ କଲାକ ପୁଣ ॥ ରାଜା ଯାଉଛୁ ମୃଗ ବନକୁ । ଶୁଣି ଆଣୀ ଗୃହଁ ଦେଲା ତାହାକୁ ॥ ଆଜ ମୁଁ କେଉଁ ପାପକରଥିଲି । ଅଣ୍ଟୁକୁଡ଼ା ମୁଖ ମୁହିଁ ଗୃହିଁଲି ॥ ଏହି କଥା ପାଖଲୋକ ଶୁଣିଲେ । ବଜା ଆଗରେ ଯାଇଣ କହିଲେ ॥ ରାଜା ବୋଇଲେ ମନ୍ଦ କୃତ୍ୟହେଲା । ସେହୁ ଅଣ୍ଟୁକୁଡ଼ୀ କପାଁ ନୋହିଲା ॥ ଯାଅରେ ଦୂତେ ବେଗ ହୋଇକର । ତାରପୁତ୍ରକୁ ଅଣବେଗେ ଧର ॥ ଆଜ୍ଞା ପ୍ରମାଣେ ଦୂତ ଚଳିଗଲେ । ପାଞ୍ଚ ପୁତ୍ରକୁ ତାର ଧର

ନେଲେ । ଦୂତେ ବୋଇଲେ ଶୁଣ ନୃପମଣି । ତାର ପୁତ୍ରକୁ ଆଣିଲୁଣି ପୁଣି । ଶିରଛେଦନ କରିବ ବହନ । ଏଥିଅନନ୍ତରେ ସୁଜନେ ଶୁଣ । ଅଦ୍ୟ ଭଦ୍ରବ ବୁଧବାର ଦିନ । ବୁଧେଇ ଓଷା ହେବ ସେହି ଦିନ । ଶାଶୁ ବୋଲଇ ଯେ ବୋହୂକୁ ଚାହିଁ ଓଷା ଆଜ କଲେ। କରିବ ନାହିଁ । ଶୁଣି ବୋହୂ ବୋଲଇ ବଚନ । କାହିଁପାଇ ଓଷା କରିବି ପୁଣ । ପାଞ୍ଚ ପୁତ୍ର ଗଲେ ରାଜା ଆଜ୍ଞାରେ । ଏ ଓଷା କରିବ କେଉଁ ପ୍ରକାରେ । ଶୁଣିଣ ଶାଶୂ ବୋଇଲା ବଚନ । ରଖିବେ ତାଙ୍କୁ ଲୋ ବୁଧିବାମନ । ଏମନ୍ତ ଶୁଣି ଓଷା ବାନ୍ଧି କଲେ । କୋଠିରେ ବସି ହୁଳହୁଳି ଦେଲେ । ବୁଧିବାମନଙ୍କୁ ଲାଗି କରିଲେ । ଓଷା ପାରିକରି ଘରକୁ ଗଲେ । ଏଥିଅନନ୍ତରେ ବୁଧିବାମନ । ଯେଉଁଠାରେ ପୁତ୍ର ପଡ଼ିଛୁ ପୁଣ । ସେ ଠାବରେ ଯାଇ ପ୍ରବେଶ ହୋଇ । ଗଣ୍ଡି ମୁଣ୍ଡ ଯୋଡ଼ି ଦେଲେକ ନେଇ । ଫୁଲ ପାଣି ନେଇ ସିଞ୍ଚି ଉପରେ । ପୁତ୍ରମାନେ ତହୁଁ ଉଠିଲେ ଧୀରେ । ବୁଧବାମନ ମହିମା ଅଶେଷ । ଘରେ ଯାଇ ପୁତ୍ର ହେଲେ ପ୍ରବେଶ । ପୁତ୍ରଙ୍କୁ ଦେଖିଣ ମାତା ତାଙ୍କର । ଆନନ୍ଦ ମନେ ସେ କୋଳରେ ଧରି । ପୁତ୍ର ବୃତ୍ତାନ୍ତ କହିଲେ ସମସ୍ତ । ମନରେ ପରତେ ନକଲେ ମାତ । ଏଥୁଅନନ୍ତରେ ଆହୁରି ଦିବସ । ରାଜା ଶିକାରକୁ ଗଲେ ବହନେ । ସେ ଦିନ ସକାଳୁ ସେ ପୁଣ ଉଠି । ଏମନ୍ତ ସମୟେ ରାଜାଙ୍କୁ ଭେଟି । ଯୋଡ଼ି ଯାଉ ଚୋର ଧନ ସମ୍ପତ୍ତି । ଅଣ୍ଟୁକୁଡ଼ା ମୁହଁ ଚାହିଲି ନିତି । ରାଜା ତା ମୁଖରୁ ଏମନ୍ତ ଶୁଣି । ପୁଣି ସେ ପୁତ୍ରକୁ ମରାଇ ଆଣି । ହସ୍ତୀଦନ୍ତରେ ତାକୁ ଚଢ଼ାଇଣ । ସମୁଦ୍ରେ ମେଲିଣ ଦେଲାକ ପୁଣ । ଏହି ମତ କେତେଥର ସେ କଲା । ପୁତ୍ର ମାନଙ୍କୁ ମାରି ନ ପାରିଲା । ରାଜା ବୋଲଇ ଚରମାନେ ଶୁଣ । ଶୁଣ୍ଢି ଅଣୀକି ଧରିଆଣ ପୁଣ । ଶୁଣିଣ ଦୂତେ ତତକ୍ଷଣ ଗଲେ । ଶୁଣ୍ଢି ଅଣୀକି ଧରି ଆଣିଲେ ।

ରାଜା ବୋଇଲେ ଏ କେଉଁ ବଧାନ । ତୋର ପୁତ୍ରକୁ ନୋହିଲା ମରଣ । ଶୁଣି ଆଣୀ ଥାଇ ବୋଲେ ଗୋସାଇଁ । ବୁଧେଇ ଓଷା ଯେ କରଇ ମୁହି । ଏଥିରେ ସଂଶୟ ନାହିଁ ଗୋସାଇଁ । ଏ ଓଷା ବଳେ ପୁତ୍ର ଦାନ ପାଇ । ଏହା ଶୁଣି ରାଜା ସନ୍ତୋଷ ହେଲା । ରାଣୀ ଶୁଣି ଉପବାସ ଯେ କଲା । ରାଜା ଓଷା ଦ୍ରବ୍ୟ ସମସ୍ତ ନେଲା । କୋଠିରେ ଯାଇଁ ପ୍ରବେଶ ହୋଇଲା । ସମସ୍ତ ନାରୀମାନେ ତହିଁ ମିଳି । ଦେଉଣ ଅଛନ୍ତି ଯେ ହୁଳହୁଳି । ବୁଧିବାମନଙ୍କୁ ଲାଗି ଦେଇଣ । ଘରେ ପ୍ରବେଶ ହୋଇଲେକ ପୁଣ । ସେହି ଦିନୁ ରାଣୀ ଗର୍ଭ ହୋଇଲା । ଦଶ ମାସେ ପୁତ୍ର ଜନମ କଲା । ମନୋବାଞ୍ଛା ତାର ହେଲା ସମ୍ପୂର୍ଣ୍ଣ । ଜନମ ହେଲା ଏକଇ ନନ୍ଦନ । ଏହି ମତି କର ଉତ୍ସବେ ଜନ । ରାଜା ବୋଇଲେ ଚରମାନେ ଶୁଣ । ସଂସାରେ ବିଖ୍ୟାତ ହୋଇଲା ପୁଣ । ରଘୁ ସାହୁକୁ ଡକାଇଣ ଆଣ । ତତକ୍ଷଣେ ଚର ବେଗ ହୋଇ ଗଲେ । ରଘୁ ସାହୁକୁ ଡାକିଣ ଆଣିଲେ । ଚର ବୋଲଇ ରାଜା ଆହେ ଶୁଣ । ରଘୁ ସାହୁକୁ ଆଣିଲୁଣି ପୁଣ । ରାଜା ଶୁଣି କରି ଆନନ୍ଦ ହେଲେ । ଧନ ବସ୍ତ୍ର ତାକୁ ବହୁତ ଦେଲେ ଦ୍ୱିତୀୟ ଖଣ୍ଡ ଯେ ହୋଇଲା ଶେଷ । ଭବେ ଭଣିଲେ ଗୋପୀନାଥ ଦାସ ।

—*—

ଏଥୁ ଅନନ୍ତରେ ସଜନେ ଶୁଣ । ଅପୂର୍ବ ରସ ଯେ ଏହି ବଖାଣ । ବୁଧିବାମନଙ୍କ ମହିମା ଯେତେ । ଓଷାଇତମାନେ ଶୁଣ ସୂଚିତେ । ବନ୍ଧୁ ମହାନ୍ତି ନାମ ବୋଲିବାର । ଯାଜପୁରରେ ଯେ ଘର ତାହାର । ଖିରଯା ନାମ ତାର ପ୍ରିୟବତୀ । ଅତ୍ୟନ୍ତ ସୁନ୍ଦରୀ ସେହୁ ଯୁବତୀ । ତାହାର ଏକ ଗୋଟିଏ କୁମର । ସେ ପୁତ୍ର ନାମ ତାର ଭାଗ୍ୟଧର । ଏମନ୍ତ ସୁଖେ ବଞ୍ଚୁଥାଇ ଦିନ । ଚିନ୍ତା ନ ଥାଇ ଯେ ତାହାର ମନ । ଏମନ୍ତ ତହିଁ ଗଲା କେତେ ଦିନ । ଭାଦ୍ରବ ମାସ ଯେ ହୋଇଲା ପୁଣ । ସମସ୍ତ କାମିନୀମାନେ ସେ ଯାଇ ।

ଓଷା ବର୍ଦ୍ଧମାନ ସମସ୍ତ ନେଇ । ଯେ ଯାହା ଦ୍ରବ୍ୟ ଘେନି ଚଳି-
ଗଲେ । ଓଷା କୋଠିରେ ପ୍ରବେଶ ହୋଇଲେ । ବୁଧିବାମନଙ୍କୁ
ଥାପନା କଲେ । ଆନନ୍ଦ ମନେ ହୁଳହୁଳି ଦେଲେ । ଓଷା
ଦେଖିବାକୁ ମହାନ୍ତ ଆଣୀ । ମନରେ ଗରବ କଲାକ ପୁଣି । ବୋଇଲା
ଏହୁ ମାଛ ଭାତ ଖାଇ । ଓଷା କରୁଛନ୍ତି କେଉଁ ବଡ଼ାଇ । ଦେଖିବା
ଓଷାର କେଉଁ ବିଧାନ । ମିଛକୁ ଦ୍ୟନ୍ତି ହୁଳହୁଳି ମାନ । ଏମନ୍ତ
ସେଠାରେ ପ୍ରବେଶ ହେଲା । ଓଷା କୋଠିରେ ଯାଇଣ ମିଳିଲା ।
ସେ ଓଷା ମନକୁ ଅଇଲା ନାହିଁ । ଇର୍ଙ୍ଗିତ କରି ବାହୁଡ଼ିଲା ସେହି ।
ତାହା ଜାଣିଲେ ଯେ ବୁଧିବାମନ । ମାୟାରେ ସର୍ପକୁ ପେଷିଲେପୁଣ ।
ବୋଇଲେ ତୁହି ଏହିକ୍ଷଣି ଯିବୁ । ବନ୍ଧୁ ମହାନ୍ତ ପୁଅକୁ ଦଂଶିବୁ ।
ଆଜ୍ଞା ପ୍ରମାଣେ ସର୍ପ ଚଳିଗଲା । ବନ୍ଧୁ ମହାନ୍ତ ପୁଅକୁ ଦଂଶିଲା ।
ଏମନ୍ତେ ଓଷାର ବିଧି ସାରିଲେ । ଯେ ଯାହା ପୁରେ ପ୍ରବେଶ
ହୋଇଲେ । ଏମନ୍ତ ସମୟେ ମହାନ୍ତଆଣୀ । ଘରରେ ପ୍ରବେଶ
ହୋଇଲେ ପୁଣି । ପୁତ୍ରକୁ କ୍ଷୀର ଦେବାକୁ ଯେ ଗଲା । ପୁତ୍ରକୁ ନେଇ
ସେ କୋଳେ ଧଇଲା । ଦେଖିଲା ପୁତ୍ର ଦେହେ ପ୍ରାଣ ନାହିଁ ।
ମରିକରି ପୁତ୍ର ଅଛଇ ଶୋଇ । ଦେଖିଣ ତହୁଁ ଆଶ୍ଚର୍ଯ୍ୟ ହୋଇଲା ।
ଆହା ପୁତ୍ର ବୋଲି ରୋଦନ କଲା । ମରି ଯାଇ କନା ଦୁଃଖୀ-
ଜୀବନ । କେତେ କଷ୍ଟରେ ପାଇଥିଲି ଧନ । ଚକ୍ଷୁ ଖୋଳି କରି
ନେ ମୋର ନେଲୁ । ଅନ୍ଧ କରି ମୋତେ ବସାଇ ଗଲୁ । ପିତାକୁ
ତୋର ଅନାଥ ଯେ କଲୁ । ଆପେ ମରି ମୋତେ ମାରିଣ ଗଲୁ ।
କାହୁଁ ଯିବ ଆରେ ଚନ୍ଦ୍ରମା ମୁଖ । ଦେଇ ଗଲୁ ମୋତେ ଦାରୁଣ
ଦୁଃଖ । ଏମନ୍ତ ସମୟେ ବାପ ତାହାର । ପ୍ରବେଶ ହୋଇଲା ଆସି-
ହୁଅର । ବୋଇଲା ଅଲୋ ତୁ କି କର୍ମ କଲୁ । କେମନ୍ତ ପ୍ରକାରେ
ପୁଅ ମାଇଲୁ । ଯେମନ୍ତ ଓଷାକୁ ନିନ୍ଦଣ ଥିଲା । ସେହି ହାଇକରି
କନ୍ଦଣ ଗଲା । ଯେତେ ଦେବତାଏ ଅଛନ୍ତି ମସ୍ତ । ତାଙ୍କୁ ସେବ

ପୁତ୍ର ପାଇଲ ମୁହିଁ । ତୁହି ପାମର ଲୋ ନ ଜାଣୁ କିଛି । କେଉଁ
ଠାରେ ଓଷା ପୂଜା ହେଉଛି । ଚାଲ ସେଠାକୁ ବେଗ ହୋଇ
ଯିବା । ବୁଧିବାମନଙ୍କ ପାଦେ ପଡ଼ିବା । ଏମନ୍ତେ ଦୁଇ ପ୍ରାଣୀ
ଚାଲିଗଲେ । ଓଷା କୋଠିରେ ଯାଇଣ ମିଳିଲେ । ଦୁଇ ପ୍ରାଣୀ ଯେ
ଆକୁଳ ହୁଅନ୍ତି । ବୁଧିବାମନଙ୍କ ପାଦେ ପଡ଼ନ୍ତି । ବୋଇଲେ ପୁତ୍ର
ଦେଲେ ଆମ୍ଭେ ଯିବୁ । ନୋହିଲେ ଏଠାରେ ପଡ଼ିଣ ଥିବୁ ।
ପୁତ୍ରକୁ ଯେବେ ନ ଦେବ ଆମ୍ଭଙ୍କୁ । କିପା ଆମ୍ଭେ ଯେ ଯିବୁ
ଘରକୁ । ପୁତ୍ର ଯେବେ ନିଶ୍ଚେ ଆମ୍ଭଙ୍କୁ ଦେବୁ । ଏ ଓଷା ନିଶ୍ଚୟ
ଆମ୍ଭେ କରିବୁ । ଏ ଓଷା ନିନ୍ଦଣ ଥିଲୁ ଯେମନ୍ତେ । ପୁତ୍ରକୁ ଯେ
ନାଶ କଲୁ ତେମନ୍ତେ । ଏମନ୍ତ ଶୁଣିଣ ବୁଧିବାମନ । ତତକ୍ଷଣେ ଯାଇ
ମିଳିଲେ ପୁଣ । ପ୍ରବେଶ ହୋଇଲେ ତାର ମନ୍ଦିର । ପୁତ୍ରକୁ ଯାଇ
ଧଇଲେ କୋଳର । ପୁତ୍ରକୁ ତାହାର ଝାଡ଼ିଣ ଦେଲେ । ବିଷକୁ
ଶୂନ୍ୟରେ ଉଡ଼ାଇ ନେଲେ । ତତକ୍ଷଣେ ପୁତ୍ର ପାଇଲା ଜୀବନ ।
ଅନ୍ତର୍ଦ୍ଧାନ ହେଲେ ବୁଧିବାମନ । ଓଷା କୋଠିରେ ମିଳିଲେକ
ଯାଇ । ଦୁଇ ଜଣ ଯାକ ଅଛନ୍ତି ଶୋଇ । ଶେଯରେ ବସି କାନ୍ଦୁଛି
କୁମର । ବେଗେ ଯାଇ କର କୋଳରେ ଧର । ଏମନ୍ତ କହି
ଛଟେକ ମାଇଲେ । ବୁଧିବାମନ ଅନ୍ତର୍ଦ୍ଧାନ ଗଲେ । ତତକ୍ଷଣେ
ଜାଣିଲେ ସେ ବେନି ଜଣ । ଶଯ୍ୟାରୁ ଚେଇଁ ଉଠିଲେ ବହନ ।
ଯତ୍ନ ଆଜ୍ଞା ଦେଲେ ବୁଧିବାମନ । ବିପ୍ରର ଘରକୁ ଗଲେ ସେ ପୁଣ ।
ପୁତ୍ର ପାଇଣେ ଯେ ଆନନ୍ଦ ହେଲେ । ପ୍ରାଣ ଥିବା ଯାଏ ଓଷା ସେ
କଲେ । ଏମନ୍ତ ମହିମା ବୁଧିବାମନ । ନିର୍ଧନୀ ଲୋକଙ୍କୁ ଦିଅନ୍ତି
ଧନ । ଅପୁତ୍ରିକେ ସେଯେ ପୁତ୍ର ଦିଅନ୍ତି । ଚକ୍ଷୁ ନ ଥିଲେ ଚକ୍ଷୁ-
ଦାନ ଦିଅନ୍ତି । ଏମନ୍ତ ମହିମା ବୁଧିବାମନ । ମହାନ୍ତିଆଣୀର ଜାଣିମା
ପଣ । ଶୁଣିଲାକୁ ସେହି ଦଣ୍ଡ ପାଇଲା । ବୁଧିବାମନଙ୍କ ଆଜ୍ଞା
ହୋଇଲା । କାମିନୀଗଣେ ଏକଥା ଶୁଣିଲେ । ଆନନ୍ଦମନେ ହୁଳ-
ହୁଳି ଦେଲେ । ପୁଣି ଅବ ଗୁଣ ବିପ୍ରର ନାହିଁ । ମୋର ଦୋଷ

କ୍ଷମା କରଗୋସାଇଁ । ଦୋଷକୁ ଦଣ୍ଡିବା ନୋହେ ଉଚିତ । ତୁମ୍ଭ ଶ୍ରୀଚରଣେ ରହୁମୋର ଚିତ୍ତ । କଣ୍ଟେକ ଘେପଦ ଦେବ ଯେବେକହୁ । ଠିକ୍ ଠିକ କରି ଲେଖିବା ମୁହିଁ । ତୃତୀୟ ଛନ୍ଦ ଯେ ହୋଇଲା ଶେଷ ହ୍ଟବେ ଭଣିଲେ ଗୋପୀନାଥ ଦାସ ।

—*—

ଏଥୁ ଅନନ୍ତରେ ଶୁଣିମା ରସ । ବୁଧିବାମନ ମହିମା ଅଶେଷ ॥ ଏକ ଦିନେ ଏକ ବ୍ରାହ୍ମଣୀ ଥିଲା । କିଛି ଦିନରେ ତା ଗର୍ଭ ହୋଇଲା ॥ ବହୁତ ଦିନ ଯେ ଦୁଃଖପାଇଲା । କେବେହେ ପ୍ରସବ ଆଉ ନୋହିଲା ॥ ଯୋଗେ ସେ ଦିନ ଅଟେ ବୁଧବାର । ବୁଧେଇ ଓଷା ପୂଜନ୍ତି ସକଳ ॥ ବ୍ରାହ୍ମଣୀ ମନରେ ବିଚାର କଲା । ଓଷା କୋଠିରେ ପ୍ରବେଶ ହୋଇଲା । ଏ ଦଣ୍ଡରୁ ଯେବେପାରହୋଇବି । ଏ ଓଷା ଗୋଟିକ ମୁହିଁ କରିବି । ଏତେ କହି ତହିଁ ବାହାର ହୋଇ । ଓଷା କୋଠିରେ ମିଳିଲାକ ଯାଇଁ । ହୁଳହୁଳି ଶୁଣି ମିଳିଲା ଯାଇଁ । ବୁଧେଇଙ୍କ ମନେ ସୁମରେ ସେହି ॥ ଏ ଓଷା ଗୋଟିକ ମୁହିଁ କରିବି । ଯେବେ ଏ ସଙ୍କଟୁ ପାରି ହୋଇବି । ଏତେ ବିଚାର ଯେ ତୁନି ହୋଇଲା । ବୁଧିବାମନଙ୍କୁ ମନେ ଧଇଲା ॥ ଜାଣିଲେ ପ୍ରଭୁ ତାହାଙ୍କର ମନ । ବିଜୟ କଲେ ଯେ ବୁଧିବାମନ ॥ ତାହାର କଷ୍ଟ ନପାରିଲେ ସହି । ବ୍ରାହ୍ମଣୀ ଦୁଆରେ ମିଳିଲେ ଯାଇଁ । ବ୍ରାହ୍ମଣୀକି ତହିଁ ଔଷଧ ଦେଲେ । ବୁଧିବାମନ ଅନ୍ତର୍ଦ୍ଧାନ ହେଲେ ॥ ଔଷଧ ଖାଇଲା ଯହୁଁ ବ୍ରାହ୍ମଣୀ । କୁମର ଜନମ ହୋଇଲା ପୁଣି ॥ ଶୂନ୍ୟରେ ତାର ଗର୍ଭ ଡାକ ଦେଲେ । ମୁହିଁ ଟି ବୁଧିବାମନ ବୋଇଲେ ॥ ଓଷା ମାନକୁ କାଷ୍ଟା କରିବୁ । ନଇଲେ ଆଉ ପୁତ୍ର ନ ପାଇବୁ । ଏହିମତି କେତେ ଦିନ ଯେ ଗଲା । ଓଷା ବିଧିମାନ ସମସ୍ତ କଲା ॥ ଏଥୁ ଅନନ୍ତରେ ଶୁଣ ସୁଜନ । ବୁଧିବାମନଙ୍କ ମହିମା ଗୁଣ ॥ ଚତୁର୍ଥ ଛନ୍ଦ କଥା ହେଲା ଶେଷ ହ୍ଟବେ ଭଣିଲେ ଗୋପୀନାଥ ଦାସ ।

ଏଥୁ ଅନନ୍ତରେ କଥାଏ ପୁଣ । ବୁଧବାମନଙ୍କ ମହିମା ଶୁଣ ॥ ଯେତେ ପ୍ରକାରେ କଲେ ବ୍ରତମାନ । କଥାମାନ ତହିଁ କହିବା ଶୁଣ ॥ ବିରହିର ପୁରେ ତାହାର ଘର । ସମ୍ପଦ ବହୁତ ଥିଲା ତାହାର ॥ ପୁତ୍ର ଦୁହିତା ଆଉ ତାର ନାହିଁ । ଦୁଃଖିତ ହୋଇ ରହିଥାଇ ସେହି ॥ ଏକ ଦିନକରେ ବିଚାର କଲା । ଓଷାଗୋଟିକ କରିବ ବୋଇଲା । ଭାରଯା ମୋହର ମଉଛି ହେଲା । ଗଛ ଯେ ଆଉ ତାର ନ ଫଳିଲା ॥ ଦୁଇଜଣ ଯାକ ଏକଇ ମନ । ବୁଧେଇ ଓଷା ମନାସିଲେ ପୁଣ । ଗର୍ଭବାସ ଯେ ହୋଇଲେ ତରୁଣୀ । ମନରେ ବିଚାର କରଇ ପୁଣି । ଏହିପରି କେତେ ଦିନ ଯେ ଗଲା ।॥ ପୁତ୍ର ଗୋଟିଏ ଜନମ ହୋଇଲା ॥ ଏହି ମତି କେତେ ଦିନ ଯେ ଗଲା । ଓଷା ମାନାସିଲା ତାହା ନ କଲା ॥ ଓଷା ଗୋଟି ତାର ମନରେ ନାହିଁ । ସମ୍ପତ୍ତିରେ ଭୋଳ ହୋଇଲା ସେହି ॥ ପୁତ୍ର ପାଇକରି ଓଷା ନକଲା । ଏମନ୍ତେ ବରଷ ତିନ ଯେ ଗଲା । ମନେ ବିଚାରିଲେ ବୁଧବାମନ । ପୁତ୍ରକୁ ତାର ହରି ନେବି ପୁଣ । ଓଷା ନ କଲା ତାର ଗର୍ବ ଶୁଣ । କେମନ୍ତେ ଓଷା ନ କରିବ ପୁଣ ॥ ଏମନ୍ତ ସମୟେ ବୁଧବାମନ । ପୁତ୍ର ଖେଳୁଥିଲା ଯେଉଁ ଠାବେଣ । ସେଠାରେ ପ୍ରବେଶ ହୋଇଲେ ଯାଇଁ । ପୁତ୍ରକୁ ଘେନିଣ ଗଲେ ଗୋସାଇଁ । ଖେଳ ଭାଙ୍ଗି ଆଉ ସମସ୍ତେ ଗଲେ । ଯେ ଯାହା ମନ୍ଦିରେ ପ୍ରବେଶ ହେଲେ । ବୁଧବାମନ ତାକୁ ମାୟାକଲେ ॥ ପୁତ୍ରକୁ ତାହାର ହରି ଯେ ନେଲେ ॥ ମାତା ଯେ ପୁତ୍ରକୁ ଖୋଜିଲା ଯାଇ । ପୁତ୍ରକୁ ଯେ ଆଉ ଦେଖିଲା ନାହିଁ ॥ ବୁଧବାମନ ମନେ ବିଚାରିଲେ । କେମନ୍ତେ ଓଷା ନ କରିବ ଭଲେ ॥ ପୁତ୍ରକୁ ଯେ ମାତା ଦେଖିଲା ନାହିଁ । ଲେଉଟି ମନ୍ଦିରେ ମିଳିଲା ଯାଇ ॥ କେଉଁଣେ ଗଲୁ ମୋର ରଙ୍କୁଣି ଧନ ॥ ତୋତେ ନଦେଖି ମୋ । ଆକୁଳ ମନ ॥ ଏମନ୍ତେ କେତେ ଆକୁଳେ ଖୋଜିଲା । ପୁତ୍ରକୁ ଆଉ ଭେଟି ନପାଇଲା । ଭାଦ୍ରବ ମାସ ବୁଧବାରଦିନ । ବୁଧେଇ

ଓଷା ହୋଇଛୁ ସେ ଦିନ । କାମିନୀମାନେ ଏକ ମେଳ ହୋଇ
କୋଠିରେ ହୁଳହୁଳି ଦ୍ୟନ୍ତି ତହିଁ । ଓଷା ଗୋଟିକ ମୁ ମନାସି-
ଥିଲି । ମୋହର ପୁତ୍ର ଜନ୍ମ ହେବ ବୋଲି ॥ ମଞ୍ଜୁଛୀ ବେଦନା
କେଣିକି ଗଲା । ଓଷା ଗୋଟିଏ ମୋ ମନେ ନ ଥିଲା । ଓଷା
କୋଠିରେ ପ୍ରବେଶ ହୋଇଲୁ । ଆନନ୍ଦ ମନେ ହୁଳହୁଳି ଦେଲୁ ।
ମନରେ କଳ୍ପନା କଲୁ ତରୁଣୀ । ଯେବେ ମୋ ପୁଦକୁ ଦେଖିବି
ପୁଣି । ଜୀବନ ଥିବା ଯାଏ ଯେ ମୋହର । ଚରଣେ ଖଟିଥିବି
ମୁଁ ତୁମ୍ଭର ॥ ବୁଧିବାମନ ଯେ ପୁତ୍ରକୁ ନେଇ । କୋଳ ଭିତରେ
ତା ଗୁଡ଼ିଲେ ତହିଁ । ଏଥୁ ଅନନ୍ତରେ ଶୁଣ ସୁଜନ । କୁମରକୁ
ଘେନି ବୁଧିବାମନ । ଓଷା କୋଠିରେ ମିଳିଲେକ ପୁଣ । ପୁତ୍ରକୁ
ସେଠାରେ ଗୁଡ଼ି ଦେଇଣ । କାନ୍ଦିଣ ମିଳିଲୁ କୁମର ମଣି ।
ମାତା ତୁଣ୍ଡ ଶୁଣି ଆସଇ ପୁଣି । ବୋଇଲୁ ରକ୍ଷିଲେ ବୁଧିବାମନ ।
ପଦକୁ ଦେଇ ତୋଷିଲେ ମୋ ମନ ॥ ଏମନ୍ତେ ଯେ ଓଷା ବିଧି
ହୋଇବ । ଆନନ୍ଦ ମନେ ହୁଳହୁଳି ଦେବ ॥ ପୁତ୍ରକୁ କୋଳରେ
ନେଇଲେ ମାତ । ବୋଇଲେ କେଣିକି ଗଲୁରେ ପୁତ୍ର । ପୁତ୍ର
ବୋଇଲୁ ଖେଳୁଥିଲି ଏଣେ । ବେଣା ହୋଇକରି ଗଲି ମୁଁ କେଣେ ।
ଓଷାପାରି କରି ଘରକୁ ଗଲେ । ଆନନ୍ଦ ମନେ ହୁଳହୁଳି
ଦେଲେ ॥ ମନୋବାଞ୍ଛା ପୂର୍ଣ୍ଣ ହେଲା ସବୁରି । ବାରଷେ ବରଷେ
ଏ ଓଷା କରି । ପଞ୍ଚମ ଗ୍ରନ୍ଥ ହୋଇଲାକ ଶେଷ । ଭକ୍ତେ
ଭଣିଲେ ଗୋପୀନାଥ ଦାସ ।

—ଃ✻ଃ—

ସ ମା ପ୍ତ

Printed by A. H. Seth--U. P. Works, Cuttack.